## କହି ଦେଏ ଟିକେ ମୋତେ

(ଶିଶୁ କବିତା)

**ପ୍ରକାଶ ଚନ୍ଦ୍ର ଦାଶ**


ପ୍ରକାଶିକା

ଶ୍ରୀମତୀ ରମାଦେବୀ ଦାଶ
'ରମାଦେବୀ ନିବାସ'
୩୮, ଶକ୍ତିନଗର
ରାଉରକେଲା- ୭୬୯୦୧୪

ପ୍ରଚ୍ଛଦ ଓ ଅଳଙ୍କରଣ

ଅନ୍ତର୍ଯ୍ୟାମୀ ମେହେର

ଅକ୍ଷର ସଜ୍ଜା ଓ ମୁଦ୍ରଣ

ତ୍ରିପାଠୀ ଗ୍ରାଫିକ୍ସ
ଏ/୧୦୨, ନିର୍ମଳ ମାର୍କେଟ
ପାୱାର ହାଉସ୍ ରୋଡ୍
ରାଉରକେଲା -୧

ପ୍ରଥମ ପ୍ରକାଶ

୨୦୦୨

ମୂଲ୍ୟ

୨୫ଟଙ୍କା


## KAHI DE TIKE MOTE

(Children's Poems)

By: Prakash Chandra Dash


PUBLISHER
Smt. Ramadevi Dash
'Ramadevi Nivas'
38, Shaktinagar
Rourkela - 769 014

COVER & INNER ART
Antaryami Meher

FIRST EDITION
2002

PRICE
RS. 25

# ଏଥିରେ ଅଛି

# ପୁଷି ନାନୀକୁ ହେଇଚି ଜର

**ପୁ**ଷି ନାନୀକୁ ହେଇଚି ଜର,
ଶୋଉଚି, ଉଠୁଚି ହଜାର ଥର ।

ବାଉଳି, ଚାଉଳି ହେଉଚି ଖାଲି,
ଆଖି ଦିଇଟାକୁ କରିଚି ନାଲି ।



କେତେବେଳେ ଉଠି ମାଗୁଚି ପାଣି,
କେତେବେଳେ ପୁଣି ହସୁଚି ଜାଣି ।

'ଭୋକ', 'ଭୋକ', ବୋଲି କରୁଚି ପାଟି,
ମାରି ଗୋଡ଼ାଉଚି ଦାନ୍ତ ନିକୁଟି ।

ପୁଷି ନାନୀଟିର ଏ ଦୁଃଖ ଦେଖି,
ମାଆ ମୁହଁ ତା'ର ଯାଇଚି ଶୁଖି ।

ଗଧିଆ ବଇଦ ଡାକିବା ପାଇଁ,
ସାନ ଝିଅ ତା'ର ଯାଇଚି ଧାଇଁ ।

ଗଧିଆ ବଇଦ ଆସିଲେ,
ଚିଆର ପକେଇ ବସିଲେ ।



ନାଡ଼ି ଚିପି ଚିପି ପୁଷି ନାନୀର,
କହିଲେ- " ଜମାରୁ ହେଇନି ଜର ।

ଶିକାର ନ କରି ଅଳସୀ ହେଇ,
ମିଛେ ଜର ବୋଲି ରହିଛି ଶୋଇ ।"

ପୁଷି ନାନୀର ଏ ବାହାନା ଜର
କହିଲ ଛାଡ଼ିବ କେବେ ?
ପୁଞ୍ଜାଏ, ଦି' ପୁଞ୍ଜା ମୂଷା ଛୁଆରୁ
ଖାଇବାକୁ ଦେବ ଯେବେ !

# ଝୁମୁରୁ ଝୁମୁରୁ ଝାଇଁକି

ଝୁମୁରୁ ଝୁମୁରୁ ଝାଇଁକି
'ଚିନୁ' କାନ୍ଦୁଅଛି କାହିଁକି ?



କାନ୍ଦୁଅଛି ମୁହଁ ଫୁଲେଇ,
ଗଡ଼େଇ ଦେଇଛି କୁଲେଇ ।

କଡ଼ା କରି କେହି କହିଛି ?
ଚାପୁଡ଼େ କାହାଠୁ ଖାଇଛି ?



ଖାଇବାକୁ ମାଆ ଦେଇନି ?
ଅପା ମନ୍ଦିରକୁ ନେଇନି ?

ବୁଲେଇ କି ବାପା ନେଲେନି ?
ଚକୋଲେଟ୍ ଅବା ଦେଲେନି ?

ନାହିଁରେ ନାହିଁ
ଏଇମିତି କିଛି ହୋଇନି,
ତେବେ, କାନ୍ଦୁଛି କିଆଁ ସେ ବାହୁନି ?

କୁଟୁରୁ କୁଟୁରୁ କୁଁ,
ବୁଝିଲି ଏବେ ଚିନୁ କାହିଁକି
କାନ୍ଦୁଛି ସୁଁ.....ସୁଁ .......

ଭାଙ୍ଗି ଯାଇଛି ତା' ଖେଳନା ବୋଲି
ନ କହି କିଛି ସେ କାନ୍ଦୁଛି ଖାଲି ।



ଖେଳନା ତାହାର ଆସିବ
'ଚିନୁ' ଆମର ହସିବ ।



ଖେଳ ବେଳେ ଖେଳିବ ସେ
ପଢ଼ା ବେଳେ ପଢ଼ିବ,
ଯେତେବେଳେ ଯେଉଁ କାମ
ବୁଝି ସୁଝି କରିବ ।

ତାକ୍ ଧିନା ଧିନି ତାଧିନି ଧିନା
'ଚିନୁ' ଟି ଆମର ନିରୁତା ସୁନା । ■

# କିଏ କରୁଛି କ'ଣ ?



ଅଫିସକୁ ଯାଉ ଅଛନ୍ତି ବାପା,
ଚୁଲି ଲଗାଉଛି ମଝିଆଁ ଅପା ।



ବୋଉ ବାଟୁଅଛି ଶିଳରେ ବିରି,
କୁନି ପାଣି ଆଣି ରଖୁଛି ଭରି ।

ଜେଜେ କରୁଛନ୍ତି ଠାକୁର ପୂଜା,
କୁନା ସଜାଉଛି ତା' ଜୋତା, ମୋଜା ।

ଦାଦା ଯାଉଛନ୍ତି ପରିବା ଆଣି,
ଭାଉଜ କାଢ଼ନ୍ତି କୂଅରୁ ପାଣି ।

ବଗିଚାରେ ପାଣି ଦିଅନ୍ତି ଭାଇ,
ମୁନା ପଢୁଅଛି ସାହିତ୍ୟ ବହି ।



ଯେଝା କାମ ଯିଏ କରନ୍ତି ରହି,
ଅଳସୁଆ କମା ନ ହୋଇ କେହି । ■

# ଖରାଦିନେ ଲାଗେ ବଢ଼ିଆ



**ଖ**ରାଦିନେ ଲାଗେ ବଢ଼ିଆ
ସୁଲୁସୁଲୁ ବାଆ ବହିଲେ,
ଖରାଦିନେ ଲାଗେ ବଢ଼ିଆ
ଗଛ ତଳେ ଟିକେ ରହିଲେ ।

ଖରାଦିନେ ଲାଗେ ବଢ଼ିଆ
ନଈ କୂଳେ କୂଳେ ବୁଲିଲେ,
ଖରାଦିନେ ଲାଗେ ବଢ଼ିଆ
ଦୋଳିରେ ଟିକିଏ ଝୁଲିଲେ ।



ଖରାଦିନେ ଲାଗେ ବଢ଼ିଆ
ଫୁଲରୁ ମହକ ଛୁଟିଲେ,
ଖରାଦିନେ ଲାଗେ ବଢ଼ିଆ
ଖେଳିବାକୁ ସାଥୀ ଜୁଟିଲେ ।

ଖରାଦିନେ ଲାଗେ ବଢ଼ିଆ
ସାଙ୍ଗ ମେଳେ ବସି ଖାଇଲେ,
ଖରାଦିନେ ଲାଗେ ବଢ଼ିଆ
ଲସି, ସରବତ ପିଇଲେ ।



ଖରାଦିନେ ଲାଗେ ବଢ଼ିଆ
ପିଣ୍ଡାରେ ଟିକିଏ ଶୋଇଲେ,
ଖରାଦିନେ ଲାଗେ ବଢ଼ିଆ
ଆଈ ବୁଢ଼ୀ ଗପ କହିଲେ ।



ଖରାଦିନେ ଲାଗେ ବଢ଼ିଆ
ଯାତରା କି ନାଟ ଦେଖିଲେ,
ଖରାଦିନେ ଲାଗେ ବଢ଼ିଆ
ମିଜାଜକୁ ଥଣ୍ଡା ରଖିଲେ । ■

# ମାଇଁ



ଝନକ ଝନକ ଝନକ ଝାଇଁ,
ମାମୁ ଘରେ ମୋର ଅଛନ୍ତି ମାଇଁ ।

ମାଇଁଟି ମୋହର ଭାଆରି ଭଲ,
ଗଲେ ମୋତେ କେତେ କରନ୍ତି ଗେଲ ।



ସିନିହରେ ମୁଣ୍ଡ ଆଉଁସି ଦେଇ,
ଘର ଭିତରକୁ ଯାଆନ୍ତି ନେଇ ।

ଭଲ, ମନ୍ଦ କଥା ପଚାରି ମୋତେ,
କଇଲାଣ ଡାଳି ଦିଅନ୍ତି କେତେ ।

ଭଲ ଭଲ ଚିଜ କରି ମୋ ପାଇଁ,
ପାଖରେ ବସାଇ ଦିଅନ୍ତି ଖୋଇ ।

ପେଟଟି ମୋହର ପୂରିବା ଯାଏ,
ବଳେଇ ବଳେଇ ଖୁଆନ୍ତି ସିଏ ।



ରାତି ହେଲେ ମୋତେ କୋଳରେ ଧରି,
କାହାଣୀ ମୁଣିକୁ ଖୋଲନ୍ତି ଥରି ।



କେତେ ରାଜା, ରାଣୀ କାହାଣୀ କହି,
ମନକୁ ମୋହର ନିଅନ୍ତି ମୋହି ।

ଯେତେ ଦିନ ଧରି ସେଇଠି ଥାଏ,
ଖୁସୀ ମନ ମୋର ଦେଖିବ କିଏ ?

ଝନକ ଝନକ ଝନକ ଝାଇଁ,
ସବୁଠାରୁ ଭଲ ମୋହରି ମାଇଁ । ■

# ଆସ ଲଗାଇବା ଗଛ

ଭାବିବାନି ଆଗ, ପଛ
କୁନାକୁନି ସବୁ ଯେତେ ଯହିଁ ଅଛ
ଆସ ଲଗାଇବା ଗଛ ।



ଗଛ ଯୋଗାଇବ ଫଳ,
ସେହି ଫଳ ଖାଇ ଆମ ସଭିଙ୍କର
ଦେହରେ ହୋଇବ ବଳ ।



ଗଛ ଯୋଗାଇବ ଫୁଲ,
ବାସନାରେ ତା'ର ଦିଗ ଚହଟିବ
କଳି ହେବନି ତା' ମୂଲ ।

ଗଛ ଯୋଗାଇବ  କାଠ,
କେତେ କାମେ ତାହା ଲାଗିବ ଆମର
ରୋଷେଇ ହେବନି ମଠ ।



ଗଛ ଯୋଗାଇବ  ଛାଇ,
ତାହା ତଳେ ବସି ବାଟୋଇ ଭାଇଟି
ଶାନ୍ତିରେ ମାରିବ ହାଇ ।



ଗଛ ବଡ଼ ଉପକାରୀ,
କେତେ ପରକାରେ ଉପକାର କରେ
କେହି ନୁହେଁ ତା'ର ସରି । ■

# ପୁଷି ଓ ମୂଷା



ଧୂସୁମ୍ ଧୂସା,
ଛକି ଅଛି ପୁଷି ଧରିବ ମୂଷା
ମୂଷା ଲୁଚିଅଛି ଭାଡ଼ିରେ,
ପାଦ ଚିପି ଚିପି ଯାଉଛି ପୁଷି
ଧରି ବସିବ ତ ମାଡ଼ିରେ ।



ପୁଷିକୁ ତା' ଆଡ଼େ ଆସିବା ଦେଖି
ମୂଷା ଲୁଚିଗଲା ସନ୍ଧିରେ,
ପୁଷି ନାନୀକୁ ତ ଲାଗିଛି ନିଶା
ଖୋଜିଲା ସେ ଅନ୍ଦି କନ୍ଦିରେ ।

ଖୋଜୁଛି ସିନା ସେ ଅନ୍ଦି କନ୍ଦି ଯାକ

ମୂଷା ଅଛି କି ବା ସେଇଠି ?

ପୁଷି ନାନୀ ସବୁ ଦରାଣ୍ଡି ଯାଉଛି

ଶବଦ ଶୁଭୁଛି ଯେଉଁଠି ।





ମୂଷା ଲୁଚିଅଛି ଇଆଡ଼େ ଯଦି ତ

ପୁଷି ଖୋଜୁଅଛି ସିଆଡ଼େ,

ଛକା ପଂଝା ଖେଳ ଚାଲିଛି ଦୁହିଁଙ୍କ

ନଜର ନାହିଁ ତ କୁଆଡ଼େ ।



ଏଇମିତି ଖେଳ ଚାଲିଥିବା ବେଳେ

ପୁଷି ଚାହିଁ ଦେଲା ତଳକୁ,

ତାହାକୁ ଧରିବ ବୋଲିକି 'ବଳିଆ'

ଛାଟୁଛି ତା' ଦୁଇ ଗୋଡ଼କୁ ।



মূষাকু সিনা সে ছকি বসিথিলা

ତା'କୁ ଛକିଲାଣି ବଲିଆ,

ଟିକେ ଡେରି କଲେ ବଲିଆ କି ତା'କୁ

ଝାମ୍ପିବନି ପିଠା ଭଳିଆ ।





ମନେ ଏହା ଭାବି ପୁଷିନାନୀ ସେଠୁ

ଡିଆଁ ମାରି 'ଛୁ' ହୋଇଲା,

ମୂଷା ଖିଆ ତା'ର ମାରା ହେଲା ସିନା

ମନ ମୂଷା ଠାରେ ରହିଲା । ■



# ଆ' ଚାଲି ଆ'ଲୋ ବରଷା ରାଣୀ

**ଆ**କାଶରେ ମେଘ ଓଢଣା ଟାଣି,
ଆ'ଚାଲି ଆ'ଲୋ ବରଷା ରାଣୀ ।



ଯାଇଥିଲୁ କାହିଁ ବରଷେ ରୁଷି,
ତୋ' ବାଟକୁ ଆମେ ଚାହିଁଛୁ ବସି ।



ତୋ' ବିହୁନେ ଆଁ କରିଛି ମାଟି,
କଅଁଳ ଦିହ ତା' ଯାଇଛି ଫାଟି ।



ନୂଆ ପାଣି ଟିକେ ପାଇବ ବୋଲି,
ଚାହିଁ ସେ କିପରି ରହିଛି ଖାଲି !

ସାରୁ ବୁଦା ମୂଳେ ବେଙ୍ଗୁଲୀ ନାନୀ,
ଉଡ଼ାଇ ତାହାର ପଣତ କାନି-

'କେଁ କଟର' ରାବି ରହିଛି ଟାକି,
ରାବି ରାବି କଣ୍ଠ ଗଲାଣି ଥକି ।



ଚାତକ ବାପୁଡ଼ା ଆକୁଳ ହୋଇ,
ଚାହିଁ ରହିଛି ତୋ' ପରଶ ପାଇଁ ।

ବିକଳେ ତୋ'ବାଟ ଚାହିଁଛି ବସି,
କେବେ ଆସି ତା'କୁ କରିବୁ ଖୁସୀ ।

ଏହିପରି ସବୁ କେତେ ଯେ କାହିଁ,
ବସି ରହିଛନ୍ତି ତୋ' ବାଟ ଚାହିଁ ।

ଝରି ଝରି ତୋ'ର ଆସିବା ଦେଖି,
ଏ ସାରା ଜଗତ ହୋଇବ ସୁଖୀ ।



ଆନନ୍ଦରେ ଧରା ଉଠିବ ହସି,
ସଭିଏଁ ଏଣିକି ହୋଇବେ ଖୁସୀ ।

ନ ଦେଖାଇ ଜମା ଆଉ ତୋ' ଠାଣି,
ଆ' ଚାଲି ଆ'ଲୋ ବରଷାରାଣୀ । ■

# ହେବି ମୁଁ ବଡ଼

**ବା**ପା ତ ବାପା,
ଏଇନେ ସିନିହ, ଏଇନେ ଖପା
ଆମ ଭଲ ପାଇଁ ହୁଅନ୍ତି,
ଭଲ ମଣିଷଟେ ହେବୁ ବୋଲି ଆମେ
କେତେ ଦୁଃଖ ସେ ନ ସହନ୍ତି ?





ବୋଉ ତ ବୋଉ,
ତାହାପରି କିଏ ଜଗତେ ଆଉ
ପାଖେ ପାଖେ ଆମ ରହଇ,
କାମ ଯେତେ ସବୁ ପଛରେ ପକାଇ
ଅଳି, ଅରଦଳି ସହଇ ।

ଅଜା ତ ଅଜା,
ଅଜା ତ ନୁହନ୍ତି, ସତେ କି ଖଜା !
ମଜା ମଜା କଥା କହନ୍ତି,
କାନ୍ଧରେ ଆମକୁ ବସାଇ ଆଦରେ
ଯାତ ଦେଖିବାକୁ ନିଅନ୍ତି ।

ଆଈ ତ ଆଈ,

ଏଇଠି ଅଛି, ଏଇଠି ନାଇଁ

ବୁଲୁଥାଏ ବାର ଦୁଆର,

କୋଳରେ ବସାଇ ଆମ ସଭିଙ୍କୁ ସେ

ଖୋଲେ ଗପ ମୁଣି ତାହାର ।





ବାପା, ବୋଉ ଆଉ ଅଜା ଓ ଆଈ

ସଭିଙ୍କ ଆଖିର ମଣିଟେ ମୁହିଁ

ତାଙ୍କରି ଆଶିଷ ନେଇ,

ପାଠ ପଢ଼ି ଦିନେ ହେବି ମୁଁ ବଡ଼

ନାଆଁ ରଖିବି ଏ ଦେଶ, ମାଟିର

ଶପଥ କରୁଛି ମୁହିଁ । ■

# ବାବୁ ଆମ ସୁନାପିଲା



**ବା**ବୁ ଆମ ସୁନାପିଲା
ପଢ଼ି ଦିଏ ପାଠ,
ଚକ, ଅଖ, ନଖ, ନଳ
ଦୁଇ ଚଉ ଆଠ ।

ପଢ଼ା ସାରି ଦେଲେ ସିଏ
ସାଇକେଲ୍‌ରେ ବସି,
ବଜାରକୁ ବୁଲି ଯାଏ
ବାପା ସାଥେ ହସି ।

ବଜାରରୁ ବାପା କିଣି
କେତେ ମିଠା ଖଜା,
ପାଟିରେ ଦିଅନ୍ତି ତା'ର
ଲାଗେ ଭାରି ମଜା ।

‘ବାବୁ ଆମ ସୁନା ପିଲା’
କହୁଥାନ୍ତି ବାପା,
ରାଗେ କିଏ ତା’ ଉପରେ
ହୁଅନ୍ତିନି ଖପା ।



ବାବୁ ପରି ଭଲ ପାଠ
ପଢୁଥାଏ ଯିଏ,
ସଭିଙ୍କ ଠାରୁ ଆଦର
ପାଉଥାଏ ସିଏ । ■

# ମନ ଇଚ୍ଛା



ଅଡୁଆ ହୁଅଇ ପେଟ
　　　　ମନଇଚ୍ଛା ଖାଇଲେ,
ସୁରହୀନ ହୁଏ ଗୀତ
　　　　ମନଇଚ୍ଛା ଗାଇଲେ ।



କଥା ବାଗ ହୁଏ ନାହିଁ
　　　　ମନଇଚ୍ଛା କହିଲେ,
ବାଟ ଜମା ସରେ ନାହିଁ
　　　　ମନଇଚ୍ଛା ରହିଲେ ।

ସଫା ଭଲ ହୁଏ ନାହିଁ
　　　　ମନଇଚ୍ଛା କାଟିଲେ,
ଗୋଡ଼ ଠିକ୍ ପଡ଼େ ନାହିଁ
　　　　ମନଇଚ୍ଛା ନାଚିଲେ ।



କାମ ସରେ ନାହିଁ ଜମା
ମନଇଚ୍ଛା ବସିଲେ,
ମନ ଖୁସୀ ହୁଏ ନାହିଁ
ମନଇଚ୍ଛା ହସିଲେ ।

ପାଠ ମନେ ରହେ ନାହିଁ
ମନଇଚ୍ଛା ପଢ଼ିଲେ,
ଜିତାପଟ ହୁଏ ନାହିଁ
ମନଇଚ୍ଛା ଲଢ଼ିଲେ ।

ମନଇଚ୍ଛା କାମ କଲେ
ଯାଏ ସବୁ ବିଗିଡ଼ି,
ସବୁ କାମ କରିବାରେ
ମୁଣ୍ଡଟାକୁ ସଜାଡ଼ି । ■



# ନୂଆ ବରଷ ଆ'

ନୂଆ ବରଷ ଆ'
ଆମ ପିଣ୍ଡାରେ ବସି ଯା' ଟିକେ
ବାଢ଼ି ଦେଉଛି ଠା'।




ନୂଆ ବରଷ ଆ'
ମା' କରିଛନ୍ତି ମଣ୍ଡା, କାକରା
ସେଥିରୁ ପୁଞ୍ଜାଏ ଖା'।



ନୂଆ ବରଷ ଆ'
ଖାଇ ସାରି ତୁ ମନ ଖୁସିରେ
ଗୀତ ଗୋଟିଏ ଗା'।

ନୂଆ ବରଷ ଆ'

'ଆମ ପିଲାଙ୍କ ସାଥିରେ ଟିକେ

ନାଚ୍ ତା' ଥେଇ ଥା' ।



ନୂଆ ବରଷ ଆ'

ସଭିଙ୍କ ମନେ ଖୁସି ଅବିର

ବୋଲି ଦେଇ ତୁ ଯା' । ■

# ହନୁ ପାଇଲା ପାନେ

ଖିଅର ବାକସ ଭାଡ଼ିରୁ କାଢ଼ି,
ଅଜା ଚାଞ୍ଛୁଥିଲେ ତାଙ୍କର ଦାଢ଼ି ।

ସାବୁନ ଫେଣକୁ ବ୍ରଶ୍‌ରେ ଗୋଳି,
ଦେଉଥିଲେ ତାଙ୍କ ଦାଢ଼ିରେ ବୋଳି ।



ଥିରି ଥିରି କ୍ଷୁର ଚଳାଇ ପରେ,
ଚାଞ୍ଛୁଥିଲେ ତାଙ୍କ ଦାଢ଼ିକୁ ଧୀରେ ।

ଏ ସବୁକୁ ହନୁ ଗଛରେ ଚଢ଼ି,
ଚାହିଁ ରହିଥିଲା ଆଖିକୁ ଫାଡ଼ି ।

ମନେ ମନେ ଭାବୁଥିଲା ସେ ରହି,

ଚାଞ୍ଚିବ ତା' ଦାଢ଼ି ମଉକା ପାଇ ।

ଏ ସମୟେ ଶୁଣି କାହାର ଡାକ,

ଅଜା ଚାଲିଗଲେ ଛାଡ଼ି ସେ ପାଖ ।



ଏପରି ମଉକା ଛାଡୁଛି କିଏ ?

ଖୁସି ମନେ ହନୁ ନାଚିଲା ବହେ ।

ଆସିଲା ତା'ପରେ ଗଛରୁ ଖସି,

ଅଜାଙ୍କ ପରି ସେ ଗଲା ଯେ ବସି ।

ସାବୁନ ଫେଣରେ ବ୍ରଶକୁ ଗୋଳି,

କଳା ମୁହେଁ ତା'ର ଦେଲା ଯେ ବୋଳି ।

କ୍ଷୁରଟିକୁ ପରେ ହାତରେ ଧରି,

ଚାଞ୍ଛିଲା ତା' ଦାଢ଼ି ନ କରି ଡେରି ।



କ୍ଷୁରଟିରେ ଥିଲା ବହୁତ ଧାର,

କଟିଗଲା ଗାଲ ଚମଡ଼ା ତା'ର ।

ଝରଝର ଗଲା ରକତ ବୋହି,

ହୋଇଲା ବିକଳ ନ ପାରି ସହି ।

ଫେରିଆସି ତା'କୁ କହିଲେ ଅଜା,

ଚଗଲା ହେବାରୁ ପାଇଲୁ ମଜା ।

ଡେଟଲ୍ ପାଣିରେ ମୁହଁଟି ଧୋଇ,

ଚୁପ୍‌ଚାପ୍ ଏଠି ଯାଆ ତୁ ଥୋଇ ।



ମଲମ ଲଗାଇ ଦେବି ଗାଲରେ,

ଆଉ ନ ଲାଗିବୁ ଦିନେ ଏଥିରେ ।

ମୁହଁଟି ଦେଖାଇ ବସିଲା ହନୁ,

ସେ କଥା ପାଶୋର ନ ଯିବ ମନୁ । ■

# ଟିକି ଟିକି ଟିକି

ଟିକି ଟିକି ଟିକି ଟିଇକି ଟିକି
ଏଇଟି ଆମର ବିଲେଇ 'ଶଙ୍ଖୀ'
ଘୁଡୁରୁ ଘୁଡୁରୁ ହୁଏ,
ଚାଳରେ, ଭାଡ଼ିରେ ମୂଷାଟେ ଦେଖିଲେ
ଝାଂପ୍ କରି ବେଗେ ଡିଏଁ ।





ଝିମି ଝିମି ଝିମି ଝିଇମି ଝିମି
ଏଇଟି ଆମର କୁକୁର 'ଟମି'
ରାତିରେ ଜଗଇ ଘର,
ଅଜଣା, ଅଚିହ୍ନା ଲୋକକୁ ଦେଖିଲେ
ଭୁକି ଉଠେ ବାରବାର ।



କିତି କିତି କିତି କିଇତି କିତି
ଇଏ ଆମ ଗାଇ ନାଆଁ ତା’ ‘ନେତି’
ଗୁହାଳରେ ଥାଏ ରହି,
ଆମ ସଭିଙ୍କର ଉପକାର କରେ
ନିତି ନିତି କ୍ଷୀର ଦେଇ ।



ଘିରି ଘିରି ଘିରି ଘିଇରି ଘିରି
ଏଇଟି ଆମର ସୁନ୍ଦରୀ ‘ଶାରି’
ପଞ୍ଜୁରି ଭିତରେ ଥାଏ,
ଦୁଧ ଭାତ ଖାଇ ମନ ମଉଜରେ
ରାମନାମ ନିତି ଗାଏ । ■

# ସାପୁଆ କେଳା

**ସା**ପୁଆ କେଳା,

ସାପଙ୍କର କି ତୁ କରୁଚୁ ମେଳା ?

ଦାଣ୍ଡ ପିଣ୍ଡାଟାରେ ବସି,

ଗୋଟି ଗୋଟି ସାପ ପେଡ଼ିରୁ କାଢ଼ି

ଭୂଇଁ ପରେ ଧୀରେ ଦେଉଛୁ ଛାଡ଼ି

ଲାଗୁଛି କି ଭାରି ଖୁସି ?



ସାପୁଆ କେଳା,

ବିନ୍ ବଜାଇ ତୁ ସାପଙ୍କୁ ଖେଳା

ଡେରି ଆଉ କର ନାଇଁ,

ଯେଝା ଯେଝା କାମ ସଭିଏଁ ଛାଡ଼ି

ଆସିଲେଣି ସବୁ ତୋ ଆଡ଼େ ମାଡ଼ି

ଖେଳ ତୋ ଦେଖିବା ପାଇଁ ।

ସାପୁଆ  କେଳା,
ଭଲ ଅଛି ଆଜି ତୋହର ବେଳା
ହସଟେ ଫୁଟେଇ ଦେଏ,
ସରୁ ନ ସରୁଣୁ ତୋହର ଖେଳ
ଜମା ହୋଇଲାଣି ଟଙ୍କା, ଚାଉଳ
ସେ ସବୁ ଗୋଟାଇ ନେଏ ।



ସାପୁଆ  କେଳା,
କହିଦେଏ ଟିକେ ନ କରି ହେଳା
ନ ଭାବି ମୋତେ ତୁ ପର,
ଯେଉଁ ସାପ ନାଆଁ ଶୁଣିଲେ ଥରୁ
ସେ ସବୁ ସାପଙ୍କୁ ନେଇ ତୁ ଖେଳୁ
ଲାଗେନି କି ତୋତେ ଡର ? ■

# ତାକ୍ ଧିନା ଧିନି

**ତା**କ୍ ଧିନା ଧିନି ତାଧିନି ଧିନି,
ଭାଲୁ ବଜାଉଛି ଖୋଳ କରତାଳ
ଠେକୁଆ ଭାଇଟି ବଜାଏ ଗିନି ।



ତାକ୍ ଧିନା ଧିନି ତାଧିନି ଧିନି,
ରିକ୍ସା ଚଳାଇ ଛେଳି ବାପୁଡ଼ାଟି
ଘଣ୍ଟି ବଜାଏ ଟିଇନି....ଟିନି ।



ତାକ୍ ଧିନା ଧିନି ତାଧିନି ଧିନି,
କୁକୁର ଭାଇଟି ମିଶାଣ କରୁଛି
ଏକ୍, ଦୁଇ ମିଶି ହୋଇଲା ତିନି ।

ତାକ୍ ଧିନା ଧିନି ତାଧିନି ଧିନି,

ସଜବାଜ ହୋଇ ଫୁଲେଇ ପୁଷିଟି

ଝୁଲି ଝୁଲି ଯାଏ ଉଡ଼ାଇ କାନି ।



ତାକ୍ ଧିନା ଧିନି ତାଧିନି ଧିନି,

ସର୍କସ୍‌ରେ ଏହି ଖେଳ ସବୁ ଦେଖି

ହସି ହସି ଗଡ଼ି ଯାଉଛି ମିନି । ■

# ସାଧବ ବୋହୂ

ସାଧବ ବୋହୂ,
ଘାସ ଶେଯ ପରେ ଡଗଡଗ ହୋଇ
କୁଆଡ଼େ ଯାଉ ?
କହିଦେଏ ଟିକେ ମୋତେ,
କାହାର କୁଣିଆ ହୋଇ ତୁ ଯାଉଛୁ
ଡାକି ଅଛି କିଏ ତୋତେ ?





ସାଧବ ବୋହୂ,
ନାଲି ଜର ଜର ଶାଢ଼ି ପିନ୍ଧି ତୁହି
ମନକୁ ମୋହୁ ।
କହିଦେଏ ଟିକେ ମୋତେ,
ଏମିତି ସୁନ୍ଦର ରୂପ କରି ତୋ'ର
ସଜେଇଲା କିଏ ତୋତେ ?

ସାଧବ ବୋହୂ,

ବରଷାରେ ଦିଶୁ; ବାକି ଦିନ ଯାକ

କେଉଁଠି ଥାଉ ?

କହିଦେଏ ଟିକେ ମୋତେ,

ମାସ ମାସ ଧରି କାହାକୁ ଡରି ତୁ

କେଉଁଠାରେ ଲୁଚୁ ସତେ ?





ସାଧବ ବୋହୂ,

ଏଡ଼େ ସୁନ୍ଦରିଆ ନାଆଁଟି ତୋହର

ପାଇଲୁ କାହୁଁ ?

କହିଦେଏ ଟିକେ ମୋତେ,

କେଉଁ ଜନମରେ ସାଧବ ଘରର

ବୋହୂ ଥିଲୁ କି ବା ସତେ !



## ପ୍ରକାଶ ଚନ୍ଦ୍ର ଦାଶ (୧୯୬୬)

କୋମଳମତି ଶିଶୁଙ୍କ ପାଇଁ ଲେଖନ୍ତି ମନୋରମ ଝରଣାର ଜଳ ଭଳି ଛଳଛଳ କବିତା । ଗୋଟିଏ କବିତା ପାଇଁ ମାସ ମାସ ଧରି ଅକଲ ଖଟାଇ ଖୋଜନ୍ତି ଓ ବାଛନ୍ତି ଅଲିଅଳ ପଦ । ଲେଖା ସରିବା ପରେ ପୁଣି ଲାଗି ପଡ଼ନ୍ତି କବିତାଟିକୁ ଆହୁରି ସଫା ଓ ସୁନ୍ଦର କରିବା ପାଇଁ । ଛୋଟ ଛୋଟ ଶିଶୁ ମାନେ କେମିତି ସହଜରେ ବୁଝିବେ, ମଜା ପାଇବେ ଓ କବିତାକୁ ମନେ ରଖି ପାରିବେ ସେ କଥା ସେ ଭାବୁଥାନ୍ତି ସବୁବେଳେ । ସଜ ଫୁଲର ମାଳା ପରି ସେ ସଜାଡ଼ି ଦିଅନ୍ତି କବିତାକୁ ଜକଜକ ଯତନରେ । ସେଇଥିପାଇଁ ସେ ଜଣେ ନିଆରା ଶିଶୁ ସାହିତ୍ୟିକ । ଉପାଦେୟ ଶିଶୁ ସାହିତ୍ୟ ରଚ଼ନାର ସ୍ୱୀକୃତି ସ୍ୱରୂପ ସେ ୧୯୮୪ ମସିହା ବିଷୁବ ମିଳନରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି ' କଟକ ଙ୍କ ତରଫରୁ ସମ୍ମାନିତ ।

**'କହିଦେଏ ଟିକେ ମୋତେ'** ତାଙ୍କର ପ୍ରଥମ କବିତା ବହି ।